ରଚକଙ୍କର ସ୍ୱାକ୍ଷର ଦେଖି କ୍ରୟ କରିବେ

# ବର୍ଣ୍ଣମାଳା ।

ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ ଦ୍ୱାରା
ପ୍ରଣୀତ ଓ ପ୍ରକାଶିତ ।
ଖମାଣଙ୍ଗ ବାଙ୍କୀ

୧ମ ସଂସ୍କରଣ ।

ବିକ୍ରୟଲବ୍ଧଧନ
ନିଃସ୍ୱ ଛାତ୍ରଙ୍କ ସାହାଯ୍ୟଦାନରେ ବ୍ୟୟିତ
ହେବ ।



CUTTACK.
Printed by B. D. Naik.
at the Dutta Press,
1919.

ମୂଲ୍ୟ ଟ ୦ /୬ ଛଅପଇସା ମାତ୍ର ।

# ଉତ୍ସର୍ଗପତ୍ର ।

ବାଳ ଚପଳତା କ୍ଷୁଦ୍ର ଫୁଲେ ଅଳ
ଗ୍ରନ୍ଥିଲୁ ଜତନେ କୁସୁମମାଳା
'ବସନ୍ତ' ନିର୍ଦ୍ଦେଶେ, 'ବସନ୍ତ' ଚରଣେ
ଭେଟୁଛାଲୁ ଏଣୁ "ବରଣଡାଳା ।"

[illegible]ବାଦ, ପୁରୀ ।
୧—୧—୧୯

ସେବକ ଅଧମ ।




ମୁଁ ଗୃହେଁ ଫୁଲ, ଏଖାଣ୍ଟ ଯିବ
ତମର ଦଯ୍ୱାର ହୁଅରେ ।
ବେଶୀ ଦନ ଅଞ୍ଜ; ଜଳବାକୁ ମନ;—
ବଳୁ ନାହିଁ ଏହୁ ନାଅଁରେ ।
ଧଜନେ ଗୁନ୍ଥିବ ଭୂଗୁମ ମାଲା
ସଜାଇବ ବପି 'ବରଣ ଡାଲ'
ଏତଲ୍ଲ ନେଇମୁଁ ଲୁଚବାଳ ଶେଜ
ବେଷ୍ଟଧ ତମକୁ ଅନ୍ଧାରେ । ୧ ।
ଗଲ୍ଲବେଳେ ଫେରଗୃହେଁ ଯନ୍ତୁ ଯେବେ
ଦେଖେଁ ସେହୁ ବେସ ମୋର ଉହୁଅଛୁ ତେବେ;
ଧୀଜଳ ନୀଜରେ ଜଳେ ମୁଁ ମରେଁ
ଦଜସ୍ୱଧ ଖାଲି ସରମେ ସରେଁ ।
ଏବଲ୍ଲ ଉମକୁ ଭେଷ୍ଟବ "ଡ଼ାଲ୍ଲଟ"
ବପରୁ ଅବା ଦ ଅଘାରେ ? । ୨ ।



ମୋ ଲାଗି ଜଳୁଛି ଗଗନେ ଗଗନେ ଦୀପ୍ତ ତାରକାରାଜି,
ମୋ ଲାଗି ଉଠୁଛି ପବନେ ପବନେ ପ୍ରେମ ମୁରଲୀ ବାଜି ।

ଫୁଟୁଅଛି ମଧୁମିଶା କୁସୁମ କୁଞ୍ଜେ,
ଚଢ଼ିଅଛି ମୋ ଲାଗି ଲତିକା ପୁଞ୍ଜେ,
ଗାଉଅଛି ବିହଗ   ସଞ୍ଜେ ସଞ୍ଜେ,
ଜଳୁଅଛି ପରବତ ଶାମଳନ୍ ଆଜି । ୧ ।

ବହୁଅଛି ତଟିନୀ ରଙ୍ଗେ ରଙ୍ଗେ
ଖେଳୁଅଛି ପବନ ଢଙ୍ଗେ ଢଙ୍ଗେ
ନାଚୁଅଛି ପୁଲକ ଅଙ୍ଗେ ଅଙ୍ଗେ,
ଝରୁଅଛି ପରାଗ ଧରାତଳ ମାଜି । ୨ ।

ନ ଭୁଲିଲି ଜୀବନେ ମୁଁ ତମର ଲାଗି,
ତେବେ ମୋର ମୁଁ ତମର ଥାଉ ମନେ ଜାଗି,
ତମହୃଦ୍ୟା ମୋର ହୃଦ୍ୟା ରହୁଅଛି ଲାଗି,
ମନମତ ଅଧରେ ରଖିଥାଅ ସାଜି ।



ନିଖିଳ ଜଗତ ଲାଗି       ଫୁଟେ ଯେ କୁସୁମ ଦାମ

ସେ ଥାଉ ମୋ ଲାଗି ବୃନ୍ତେ

ଦେଖୁ ତହିଁ ମଉ ଧାମ ॥

ନିଖିଳ ଗଗନ ଭାସ
ଛାଟେ ଯେ କିରଣ ଧାସ ;
ସେ ଥାଉ ମୋଲାଗି ଶୂନ୍ୟ,
ଲଭୁ ସେ ଶୁଣି ମୋନାମ । ୧ ।

ଲଳତା ମାଧୁରୀ·ଯେତେ
ନିକୁଞ୍ଜ କାନନ ମେଳା
ମୋ ପରଶେ ଯାଉଛନ୍ତି,
ନ ଥାଉ ବରନଣାମ ।୨।

ନିଖିଳ ଜଗତ ବାସୀ,
ଲଭି ଯେ ଅରଧ ଅଧି,
ଯାଉ ଯେ ସାଗର ଘାଟେ
ଖେଦୁ ମୋ ଭରମ ଧାମ । ୩ ।

ଦଅ ମୋତେ ସେ ସତ୍ୟ ସୁଧାଳାପେ,
ଦଅ ସ୍ନେହଳାପେ
ସୁଧାଳାପେ ଶାନ୍ତ୍ରଳାପେ ।

ନେଣ ମମ ଶିକ୍ତ ନୀର-ଧାରେ
ଚିତ୍ତ ମମ ପୂର୍ଣ୍ଣ ହାହାକାରେ
ଚିନ୍ତାନାହିଁ ଭଳେ ଯବ,
ଦଅ ସ୍ନେହଳାପେ, ସୁଧାଳାପେ, ଶାନ୍ତ୍ରଳାପେ । ୧

ଭଗ୍ନମନେ ପେଷ ବନେ ବନେ
ଗର୍ଭମମ କ୍ଷିପ୍ର ଅନଳକେ,
ଜଗତ ଦୁଃଖ ଗ୍ରସୁ ଆସି,
ଦଅ ସ୍ନେହଳାପେ, ସୁଧାଳାପେ ଶାନ୍ତ୍ରଳାପେ । ୨

ବନ୍ଧୁ ମମ ତେଜୁ ମମସଙ୍ଗ
ସ୍ନେହ ମମ ହେଉ ସଦା ଭଙ୍ଗ
କୁସୁମ ମର୍ମ ଛିନ୍ନ ହେଉ,
ଦଅ ସ୍ନେହଳାପେ, ସୁଧାଳାପେ, ଶାନ୍ତ୍ରଳାପେ । ୩

ଶରୀରକଣି,
ତମସାମିଣି,
ଝରଇ ତାର ଧାରେ :—
ଝିଲ୍ଲି ଡାକେ,
ଝମକେ ଧରା,
ଚମକ ଡାଳେ ଡାଳେ ।

ବୃନ୍ତହୀନ କୁସୁମ ଗୋଟ, ଅକାଳେ ଧସ୍ତ ପଡ଼ନ୍ତି ଲୋଟି
ବାସନା-ମଧୁ ଗନ୍ଧି ଲୁଟି
ପବନେ ଝଡ଼ମାଳେ । ୨ ।

କେ'ସେ ନବ ପଥିକା ଆଗେ
ଚଳାଏ ପଥ କି ଅନୁରାଗେ ?
ପରଶେ କିବା ଯାତନା ଜାଗେ ?
ମନ କି କଥା ଭାଳେ ? । ୩ ।

ଏବେ ମମ ଦ୍ୱୀପ—ଚଳକ
ଢଳର ପଡେ କି ଝଳଝଳ ।
ଦଏ କେ ସଖା ଦଶ ଆଲୋକ ?
ମୁଁ ତ ବର ଭାବେ ? । ୪ ।



ବାଜଉଠେ ସେହି ଗମ୍ଭୀର ଧ୍ୱନ ଗଗନ ଗରଜନେ
ଚମକ ଉଠ ଦାମିନୀ ଥରେ ବାଦଲଭଙ୍ଗ ଘନେ ॥

ତପନ-ଶ୍ରାନ୍ତା ! ଗିର ବାସିନୀ
ପଲ୍ଲବେ ନବବେଶ ଧାରିଣୀ
ଲଢକା ତରୁ ବନବାସିନୀ,
ଘେରନା ମୋ ନୟନେ ।

ପୁଲକ ! ଅସ ହୃଦୟ ଭାସି,
ସୁଦୂରେ ଯା'ଅ ବିଷାଦରାଶି,
ମିଳନ ଆଶା ! ମଧୁର-ହାସୀ
ଅସ ଗୋ ନବମନେ ।

ଆସିବେ ସେହି ସରଗ ବାସୀ,
ନୟନ-ପଥ ତମସା ନାଶି,
ଭାବ-ଲହରୀ ଉଠେ ବିକଶି
କି ଦେବ ଜୀବଧନେ ?

---

ଫୁଟେ ଭୁଟେ କେତେ ଫୁଲ କାମିନୀ
ମାତେ ମାତେ ଯାଏ ଝୁଣ୍ଡ ମାଳିନୀ
ଦୂରବନେ, ଘାଇ ମନେ, ଅଗୋଚରେ, ଅଗୋଚରେ,
କବା ବୁଝୁ କେ ଆଶାରେ—ମଳୟ !
ଫୁଟେ ମଧୁ ହାସିନୀ, ଭୁଙ୍ଗ ପଛ ଫୁଲ ପରଶ-ମଣି ?
ନବଭେଳେ ଭେଟେ ଫୁଲ ଯାମିନୀ ।
ଅଯାଚତେ ଯାଉ ପାଶେ ଗୁପତ କି ମୋହ ଅଶେ ?
ଏହିମତ ତୁଅଁ ମୋତେ ମଳୟ ! ଦେଖେଁ ତେଜ ଦାମିନୀ ।

---

କହ ଗିରିଲତା, କହ ଥରେ କଥା କହ କେବେ ଆଉ
ସେ ଆଶା ପୂରିବ ?
କହରେ ଭ୍ରମର, ପ୍ରଭାତ ସଙ୍ଗୀତେ, କହ କେବେ ଆଉ
ସେ ଆଶା ପୂରିବ !

ଅଛିଲେଣି କେତେ କୁସୁମ କାମିନୀ
ଗାଇଲେଣି କେତେ କରୁଣ ରାଗିଣୀ,
କେତେ ସନ୍ଧ୍ୟାତାରା ଢାଳି ସୁଧାଧାର,
ଆସିଲେ, ଗଲେ କେତେ ସେ ପୂରିବ ? । ୧ ।

ଆସି ଗଲେଣି କେତେ ବା ବସନ୍ତ,
ଝଡ଼ିଲେଣି କେତେ କୁସୁମ ଫୁଟନ୍ତ,
ପାହିଲାଣି କେତେ ପିପାସିତ ନିଶି,
କହ କେବେ ଆଉ ସେ ଆଶା ପୂରିବ ? । ୨ ।

କେତେ ଅନ୍ଧଗଲ—କେତେ କାଳ ଦେଲ
ସେ ଅଙ୍କ ସେ କାଳ, କେତେବେଳ ନୋହିଲା;
ଦଳ ଦଳକର ବରଷ ବହିଲା,
ଘୀଦେଧାର କେତେ ସାଗରେ ମିଶିବ ? । ୩ ।

ଅଥବା ମୋ ଆଶା ଅଶାନ୍ତେ ରହିବ,
ସେହି କଳାନଦୀ ନଦୀରେ ରହିବ,
ସେହି ତେଜ ତାହା ତେଜରେ ମିଶିବ;
କେବେ ଆଉ ଏବ ଆଖି ନ ପାଇବ ? । ୪ ।

———:*:———

ଭ୍ରାନ୍ତ ମତି ମମ, କ୍ଳାନ୍ତ ଦବାନଟି, ଶ୍ରାନ୍ତ ହେଲିଣି ମୁଁ ଆଶା କରି,
ବୁଝିବି ବୁଝିବି, ସେ ରହସ୍ୟସାର, ଭସାଇ ଦେଲି ମୁଁ ଅଶ୍ରାଚର ।
ଧାଏଁ ମନ କାହିଁ ସୁଦୂର ଦେଶେ ·
ନ ଜାଣି ଗୁପତ କେଉଁ ଅଦେଶେ
ଫେରି ପଡେ ଖସି କାହିଁ ହତାଶେ ? ଅବାରଣେ ଯାଏଁ ମରି ।୧।

ଚେତ ଦଅ ପରାଣେ ମମ
ସପନେ ଯା ଭାବେନା କେବେ
ସପନର ଭୁଲକା ଛବି
ହୁଏ ଯାହା ଭାବନ୍ତୁ ଯେବେ ।
ଗୃହେଁ ନା ଯା ଦଅ କାହିଁକି ? ଦଅ ଯଦି ନିଅ କାହିଁକି ।
ମନ ମୋର ଦୁଃଖ ପାଇଁକି ? ଭାବି ଭାବି ଯାଏ ସରି । ୨ ।

---

ଏକ ଥରୁ ଥରୁ ଟେକଗଣି ଘନେ ସ୍ଵନେ ନା,
ଖସି ଗଲା କେଉଁ ଦେଶେ କପାଁ ସାଜେ ନା !
ତରୁଶାଖା ପତ୍ରେ ପତ୍ରେ ଏ କ ତେଜ ଥରେ ଥରେ
ଜଳୁଜଳୁ କାହିଁ ଜଳେ କନ୍ତୁ ବୁଝେନା
କପାଁ ଶୁ ଶୁ ଡାକେ ଝଡ଼ ଉଠେ ବୀଣା ବାଜେନା ।
(ଥରେ)— ମନମୋର ଅଧୀର କିଅଁ କନ୍ତୁ ମାନେନା—
କାହାଲାଗି ଧାଏଁ ଖରେ କନ୍ତୁ ଜାଣେନା ?
ଉଠେ ଏହୁ ତରଙ୍ଗମ ଥରେ ସ୍ଥିରଜଙ୍ଗମ,
ଥରୁ ଉଠେ ମନ ମମ କପାବୁଝେନା—
ଏକ ସୌଦାମିନୀ ରେଖା ଛୁଟେ, କନ୍ତୁ ବୁଝେନା—
ଆଜ ଥରେ ଥରେ ଏକ ସାତ ଏ କ ଛନ୍ଦନା ?



ଘୋର ତମସାଗର ଦୂର ଆକାଶେ—
ଦପି ଦପି ଦପି ଏକ ଜ୍ୟୋତି ବିକାଶେ ?

ଶାନ୍ତ ଗମ୍ଭୀର          ଭାବନା ଛନ୍ଦର
ତେଜେ ଉଠେ ଝଲସି ପଲକେ ପଲକେ
ମରୁଦେଶେ ଫୁଟେ ଫୁଲ—ପୁଲକେ ପୁଲକେ ।
ବିଜନେ ବିଜନେ          ବିପିନେ ବିପିନେ
ଛୁଟେ ବାସ ପିପାସିତ ଆଶେ । ୧ ।

ଭ୍ରାନ୍ତ ପଥିକର     ନୟନ ତେଜଧାର
ବରଷା ଚମକିତ—ଦାମିନୀ ଝଟକେ
ବହେ ଧୀର ବାରିଧାର, ଥରକେ ଥରକେ,
ଜୀବନେ ଜୀବନେ—ଗୋପନେ ଗୋପନେ
ଉଦ୍ଭିତ ତପ୍ତ ପିୟୂଷେ । ୨ ।

ନନ୍ଦ-ବଶୀଭୂତ,     ଚରଦନ-ଚନ୍ଦ୍ରିତ ;—
ଜଗତ ବୀଣାତାର ବାଜି ଉଠେ ଝଙ୍କେ,
ଥାଇ ଉଠେ ମନସାଧ କ୍ଷଣକେ କ୍ଷଣକେ
ସଘନେ ଗୋପନେ,     ଗୋପନେ ସଘନେ
କହେ କିସ ବାନ୍ଧେ ତେଜପାଶେ । ୩ ।

ଅୟି, ତପ୍ତ ହୃଦୟ ଲୁପ୍ତ ତାପ—
ସେହ୍ନଭେଦେ, ଧ୍ୱଳ୍ପ ଭୁ ଯେ ବେଦେଥରେ ;
(ମୋର) ସୁପ୍ତ ଗୁପ୍ତ ମୁଗ୍ଧନଚ୍ଛେଂ ।

ବହୁଛି ମଧୁ ପବନ
ଶୁଭୁଛି ସେ ମଧୁଗାନ
ଦଣ୍ଡିଛି ମଧୁବଦନ—
(ଯହିଁ) ସାନ୍ତ୍ର ନିଶି, କ୍ଲାନ୍ତଶଶି, ଜୋଛନା ଢାଳେ
ମନ ଅବେଗେ । ୧ ।

ଭୁଲିଛି ଗତଭାବନା
ଲଭିଛି ମନବେଦନା
ମରମ ସ୍ମୃମ ଯାତନା;—
(ଅବେଣ) ଅଶା ନାଚ ପମ୍ବଣଖ୍ରିଧ ଝଡଣାଯ
ବଦ୍ଧଇବେଗେ । ୨ ।

ଗୃହେଁନା ଦେଖିବ ଥରେ
ଦାଣ୍ଡିବ ହୃଦୟ ଥରେ
ତାଡ଼ିବ ସେହ୍ନ ଅଦରେ,—
(ଖାଲି) ଅଶାରଅଶା, ମନପିପ୍ୟାସା
( ଏ ) ଭଗ୍ନହୃଦେ—ଥାଉଶୁଭେ । ୩ ।



ନଶିର, ନବୀଡ଼ ନୀଳ ଘନ ଧାରେ,—
ନୀରବେ ଚମରେଖା ପାରେ, ପାରେ,
ସାରେ ସାରେ, ଘନଘନ ପର୍ଣ୍ଣବେଦୀ ;—
ମଧୁର ଛନ୍ଦେ ଭ୍ରମି
ଉଠେ ଅଲେଖ ଗାରେ ।

ମମ ପର୍ଣ୍ଣ କୁଟୀର
ଛବି ସୁନ୍ଦର !
ଏହି ତାର ଅପରୂପ ବେଶ !
କାନନ ମୁଖରତ କାହାଭାଳ ଲଚି,
ଯେବେ ଏହି ରହସ୍ୟ ଅଶେଷ ?
ମନମନ ଶାନ୍ତ ଚେତେଜ ଜଳେ ଦପ ଦପ ଥରେ ଥରେ ।

---

ସେହି ସତ୍ୟ, ସେହି ନିତ୍ୟ ସେହି ଶାନ୍ତ ସେହି ଆରାମ,
ସେହି ସୁଖ ସେହି ଦୁଃଖ,
ସେହିତ ଆନନ୍ଦ ଧାମ ।।
ସେହିତ ବୈକୁଣ୍ଠ ତାର
ହୃଦ ଆମୋଦ ଅଲେଖ ଧାର
ପଦ୍ମ ଚରଣ, ଅଧମ ଶରଣ,
ହୃଦୟ ମୋହନ ପୂଜନୀୟ ।

---

ବାନୀ ଭେଦା, ମଧୁରସ୍ୱରେ,
ଉଠେ ବଂଶୀତାନ
ସେଠାନ କୁଞ୍ଜେ, ଲତିକା ପୁଞ୍ଜେ,
ଦେଖାଏ ଶାନ୍ତିଧାମ ।

ସେଠାର ଶୁଭ୍ର କୁସୁମ ମନ୍ଦେ
ଦୋଳାଏ ଗୁପ୍ତ ମିଳନ ଛନ୍ଦେ,
ଗଗନ ଦୀପ୍ତ କିରଣ ଅଙ୍କେ,—
ଦେଖାଏ ଶାନ୍ତି ଧାମ ।

ସାଗରଜଳରୁଁ ଝଞ୍ଜବତୀରୁଁ
ଉଠିବେ ତେଉରାଶି
ଫେଁନୀଳ ଶୁଭ୍ରା କୁସୁମଗଭ୍ରା
ଲୋଟିବ ଭାସି ଭାସି

ସେଠାନ ଘଟେ; ବିହଗଦଳେ
ଗାଇବେ ମନ୍ଦ୍ର ଗମ୍ଭୀର—ସ୍ୱରେ,
ସରସ ଫୁଲ, ଉଠିବ ଫୁଟି
ଜାଗିବ ଆଶା ଗାନ ।

ମମ ମନ, ଧନ, ଅଙ୍ଗ ଅର୍ପିଲି ପଦ୍ମରେ;
ଉଚ୍ଛତଏ କୁସୁମିତ ହାରେ । ୦

ଚନ୍ଦନ-ଚର୍ଚ୍ଚା-ସୁମଣ୍ଡିତ ପଦ୍ମରେ
ଚର୍ଚ୍ଚିତ କୁଙ୍କୁମ-ବିନ୍ଦୁ
ବର୍ଷିତ ଛଳ ଛଳ, ଝରଇ ନେତ୍ରମମ,
ଚୁମ୍ବିଲେ ମମ ଜୀବ-ବିନ୍ଦୁ ।

ନିଶିଦିନ ତୁମେ ମୋର
ଚିରଧନ ସେହୁ ତୁମେ ମୋର,
ସୁଖେ ଅବା ଦୁଃଖ ଭାରେ;
ମଙ୍ଗଳ ମଧୁରବ, କଳ୍ପିତ-ବାଞ୍ଛା, ସିଞ୍ଚିତ ନବ୍ୟ ସୁଧାରେ
ନାଶିବ ତିମିର, ଖିଶିର ଭେଦ ପଥ ଦରଶନ କାରେ । ୧ ।

ବନ୍ଦନ ହେ ! ମମ ଜୀବନର ଚରଣେ
ଯତ ଯତ ଦେବ ଧୀର ବନ୍ଦେ
ନନ୍ଦତ, କର ବାରେ, ନନ୍ଦତ ହୃଦୟ ମୋର
ତବ ଚେତନେ ବୋଷ୍ଟ ଖଣ୍ଡ ନନ୍ଦେ,

ସ୍ନିଗ୍ଧତ ଆଖି ମୋର ଥକା
ରଖି ଅଛୁ ନୀରଧାରେ ପାଖ
ଜାହ୍ନବୀ-ଯମୁନା-ବିଧୌତ ପଦ୍ମରେ ଲସାଇବ ଅଙ୍ଗ ସେହୁ ଯାରେ
ଛଳନା କରନା କରୁଣା,-କର ! ତବ ନାମ ପାପୀ ତାରେ ।୨

ଆଖିର ପଲକେ    କି ଢେଉ ଝଲକେ
ଦେଖିଲି ଏ ରୂପ ସାର
ଦେଖିଥିଲି ଯେତେ    ମୋହନ ମାଧୁରୀ
ଏରୂପଠୁ ହେଲା ହାର ।

ଭୁଲିଥିଲି ତେବେ ଏକା 'ରୂପସାର'
ଭୁଲିଥିଲି ତେବେ ଏକା 'ମଣିହାର'
ତେବେତ ଅଗତ    ତେବେ ଏକା ଗତ
ଆଜି ସବୁ କଥା ଗ୍ଲର । ୧ ।

ଚାହିଁ ଚାହିଁ, ଭାବିଥିଲି ମନେ, ଆଶା କଇଁପନେ ହେବେ
ମରମର ଚିର—ପ୍ରେମିକବରତ    ଦେଖିଲି ନୟନେ ଏବେ,

ଆଶା-ଲତିକାର ଗୋଲାପ ଫୁଟନ୍ତି
ଆଶା-ଆଲୋ ଅମୃ ସୁଦୂର-କୂଳନ୍ତି
ଗୁପତ-ଭେଦର    ଗୁପତ-ମୂଳନ୍ତି
ଆଜୁ ସବୁ ସେନା ଗ୍ରହା ୨ ।

ଦୂରେ ଦୂରେ ଢେବେ ପାଖରେ ମୋହର ଡ଼ାକୁଛ ପରାଣ ବନ୍ଧୁ ।
ଝୁର ଝୁର ଝୁରେ ଶରବାଣଧାର—ଝଙ୍କୁଲେ ଗୁପତ ହିନ୍ଧୁ ।

ମନ କରେ ଯାଇ ଧରିବ ଥରେ
ଯିବାବେଳେ ମୋର ହୃଦୟ ଥରେ

କାହିଁକି ?

ଧରା ଦେଇ ତୁମେ ଲୁଚିଯାଅ ପ୍ରେମଇନ୍ଦୁ ? । ୧ ।

ଘର କୋଣେ ସେହୁଛବିଟି ଫୁଟେ
ଭାବକୋଣେ ସେହୁ ରେଖା ଉକୁଟେ

କାହିଁକି ?

ଫୁଟି ଉଠି ପୁଣି ଛପିଯାଅ ତେଜ ବିନ୍ଦୁ । ୨ ।

ଖେଳେଇ ଥାଆନ୍ତି ଅନ୍ଧାରେ ପଡ଼
ମାନେ ମାନେ ଘବଂ ଯାଆନ୍ତି ପଡ଼ି,

କାହିଁକି ?

ଦେଖା ଦେଇ ମାୟା ! ପରାଣକୁ ବେଧୀଛନ୍ତ ? । ୩ ।

ଫୁଟୁଛି ମାନସ—ସାଗର ଭିତର ଶତ-କୁସୁମ ଧାଇଁ
ଜାଣେନା କବି, ଜାଣେନା—କାହାର ଏ ସୁଖଚାଇଁ !
ନଗ୍ନଶାଂତପ୍ତ ବାଲୁକାଂମରୁ
ମଣିବ ଅସାର ଜଳପଥରୁ
ଯାବତ ସୁଖ; କରୁଣାସିନ୍ଧୁ ମଣିବ ଦୁଃଖ ଭାଇଁ । ୧ ।
ଲେପିବି ମରମେ କୁସୁମ ଲତା
ଜାନେ କାନେ ତାର ତହିର କଥା
ବିତରିବ ତାର୍ଯ ଗଗନେ, କାନନେ, ସମାନେ ଭୁବନସାରା । ୨ ।
ସରଗ, ମରତ; ଜଗତ ଲୋକେ ।
ଦେଖିବ ଆଉ ମୁଁ କେବେ ଆଲୋକେ ?
ପଢ଼ିସି ପାଇବି ତେବେ "ଫୁଲମଣି" ଦେବ ମୁଁ ଅମୃତଧାରା ।

---

ସ୍ଥାନ ଦିଅ ମୋତେ, ପୂର୍ଣ୍ଣିଧୂଳି ପଥେ,
ତରୁ ଲତାତଳେ ଅଜଣା ଧାମରେ
ପଦବୀ ଦିଅ ମୋତେ, "ମାନବ" ବୋଲି
ଖୋଜେନା ଆଉ ଆନ ଦାନରେ
ଗୃହେନା ଆଉ ଆନ ଦାନରେ । ୩ ।
ଭେଦଜ୍ଞାନେ ଖୋଜେନା ମନେ ଜଳବ ନିଜ ଇଚ୍ଛା ପଥରେ
ନତ ଥାଉ ସଦା, ଥିର ଗୁରୁଭାରେ, 'ମୋର' ବୋଲି ନ ଥାଉ ସଂସାରେ
ନ ଥାଏ ବୃଥା ଅଭିମାନରେ

---

ସମାପ୍ତ ।

PRINTED AT THE DUTTA PRESS, BY B. D. NAIK.

ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ କୃତ ।—

ଭଲା ହାଣ୍ଡିଥ ମେଘ ଟ ୦ /୨

ପ୍ରାପ୍ତିସ୍ଥାନ—ଅରୁଣୋଦୟ ପ୍ରେସ—ବାଲୁବଜାର କଟକ
ପ୍ରିଣ୍ଟିଂ କୋମ୍ପାନୀ—ଦରଘାବଜାର କଟକ ।
ଦତ୍ତପ୍ରେସ—ବାଲୁବଜାର, କଟକ ।
ଓ ଅନ୍ୟାନ୍ୟସ୍ଥାନରେ ମିଳେ ।